# ସୁଫି ଅମ୍ବାପ୍ରସାଦ

## ସହିଦ ଭଗତ ସିଂ

ଭାଷାନ୍ତର

ଅଧ୍ୟାପକ ନୀଳମଣି ସାହୁ

ଆଜି ଭାରତବର୍ଷରେ କେତେ ଲୋକ ତାଙ୍କରି ନାମକୁ ଜାଣନ୍ତି? ତାଙ୍କରି ସ୍ମୃତିରେ ଶୋକାତୁର ହୋଇ କେତେ ଲୋକ ଲୁହ ଗଡ଼ାନ୍ତି? କୃତଘ୍ନ ଭାରତ ଏହି ଭଳିଆ କେତେ ରତ୍ନଙ୍କୁ ହରେଇଛି, ଅଥଚ କ୍ଷଣିକ ପାଇଁ ବି ଦୁଃଖ ଅନୁଭବ କରିନାହିଁ।

ସେ ଜଣେ ସଚ୍ଚୋଟ ଦେଶଭକ୍ତ ଥିଲେ । ତାଙ୍କରି ହୃଦୟରେ ଦେଶ ପାଇଁ ଦରଦ ଥିଲା । ସେ ଭାରତର ଗୌରବ ଦେଖିବାକୁ ଚାହୁଁଥିଲେ, ଭାରତକୁ ଉନ୍ନତିର ଶିଖରରେ ପହଞ୍ଚେଇବା ପାଇଁ ଚାହୁଁଥିଲେ, ତେବେ ବି ଆଜି ଭାରତରେ ବହୁତ କମ୍ ଲୋକ ତାଙ୍କରି ନାମକୁ ଜାଣନ୍ତି । ତାଙ୍କୁ ପୁଣି ସମ୍ମାନ କିଏ ଦେଲା ନା ଇରାନ! ଆଜି ସେ ସେଠି ପ୍ରଭୁ ସୁଫୀଙ୍କ ନାମରେ ସର୍ବପ୍ରୀୟ ହେଉଛନ୍ତି ।

ସୁଫୀଙ୍କ ଜନ୍ମ ୧୮୫୮ ରେ ମୁରାଦାବାଦରେ ହୋଇଥିଲା । ତାଙ୍କରି ଡାହାଣ ହାତଟି ଜନ୍ମରୁ ହିଁ ଖଣ୍ଡିଆ ଥିଲା । ସେ ଥଟ୍ଟାରେ କହୁଥିଲେ — ଆରେ ଭାଇ! ସତାବନରେ ମୁଁ ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ କରୁଥିଲି । ହାତଟି କଟିଗଲା ।

ମୃତ୍ୟୁ ହୋଇଗଲା । ପୁଣି ପୁନର୍ଜନ୍ମ ହେଲା, ହେଲେ କଟା ହାତଟା ସେମିତି କଟା ହେଇ ରହିଗଲା ।

ସେ ମୁରାଦାବାଦ, ବରେଲୀ ଓ ଜଳନ୍ଧର ଆଦି କେତେକ ସହରରେ ଶିକ୍ଷା ଲାଭ କରିଥିଲେ । ଏଫ୍. ଏ. ପାସ କରିବା ପରେ ସେ ଓକିଲାତି ପଢ଼ିଥିଲେ, କିନ୍ତୁ ତାକୁ ପେଶା କରି ନଥିଲେ । ତେବେ ଉର୍ଦ୍ଦୁ ଭାଷାରେ ସେ ଜଣେ ପ୍ରଭାବଶାଳୀ ଲେଖକ ଥିଲେ ଓ ସେହି କାମରେ ହିଁ ଜୁଟି ଗଲେ ।

୧୮୯୦ ମସିହାରେ ସେ ମୁରାଦାବାଦରୁ ଜାମ୍ୟୁଲ୍ ଇଲୁକ୍ ନାମରେ ଏକ ଉର୍ଦ୍ଦୁ ସାପ୍ତାହିକ କାଗଜ ବାହାର କଲେ । ଏହାର ପ୍ରତ୍ୟେକଟି ଶବ୍ଦ ତାଙ୍କରି ଆନ୍ତରିକ ଅବସ୍ଥାର ପରିଚୟ ଦେଉଥିଲା । ସେ ହାସ୍ୟରସର ଜଣେ ପ୍ରସିଦ୍ଧ ଲେଖକ ଥିଲେ, ହେଲେ ସେହି ଲେଖାରେ ଗାମ୍ଭୀର୍ଯ୍ୟତାର ଅଭାବ ରହୁ ନଥିଲା । ସେ ହିନ୍ଦୁ-ମୁସଲମାନ-ଏକତାର ଜଣେ ଦୃଢ଼ ସମର୍ଥକ ଥିଲେ ଓ ଶାସକମାନଙ୍କର କଠୋର ସମାଲୋଚନା କରୁଥିଲେ ।

୧୮୯୭ ମସିହାରେ ରାଜଦ୍ରୋହ ଅପରାଧରେ ତାଙ୍କୁ ଦେଢ଼ ବର୍ଷର କାରାଦଣ୍ଡ ମିଳିଲା । ଯେତେବେଳେ ୧୮୯୯ ରେ ସେ ଛାଡ଼ ପାଇ ଫେରିଲେ ସେତେବେଳେ ୟୁ. ପି. ରେ କେତେକ ଛୋଟିଆ ଛୋଟିଆ ରାଜ୍ୟରେ ଇଂରେଜମାନେ ହସ୍ତକ୍ଷେପ କରୁଥିଲେ । ସୁଫୀ ଜୀ ସେଠାରେ ଇଂରେଜ ଓ ରେସିଡେଣ୍ଟମାନଙ୍କ ଉଦ୍ୟମକୁ ଭଣ୍ଡୁର କଲେ, ସେମାନଙ୍କୁ ପଦାରେ ପକାଇଲେ । ହେଲେ ତାଙ୍କ ଉପରେ ମିଥ୍ୟା ଦୋଷାରୋପ ଅଭିଯୋଗରେ ମାମଲା ଚାଲିଲା ଓ ସମସ୍ତ ସମ୍ପତ୍ତି ଜପ୍ତ କରି

୬ ବର୍ଷର କାରାଦଣ୍ଡ ଦିଆଗଲା । ଜେଲ୍‌ରେ ତାଙ୍କୁ ଅକଥନୀୟ କଷ୍ଟ ସହିବାକୁ ପଡ଼ିଥିଲା, ତେବେ ବି ସେ କେବେ ହେଁ ବିଚଳିତ ହୋଇ ନଥିଲେ ।

ସୁଫୀ ଜୀ ଜେଲ୍‌ରେ ବେମାର ପଡ଼ିଲେ । ଏକ ଅଳିଆ ଅସନା କୋଠରୀରେ ବନ୍ଦୀ ଥିଲେ । ତାଙ୍କୁ କୌଣସି ଔଷଧ ଦିଆ ଯାଉ ନଥିଲା, ଏପରିକି ପାଣି ଆଦିର ମଧ୍ୟ ଯଥାର୍ଥ ବ୍ୟବସ୍ଥା ହୋଇ ନଥିଲା । ଅଥଚ ଜେଲ୍‌ର ଆସୁଥିଲେ ଓ ହସି ହସି ପଚାରୁଥିଲେ — ସୁଫୀ, ବର୍ତ୍ତମାନ ପର୍ଯ୍ୟନ୍ତ ତୁମେ ଆହୁରି ବଞ୍ଚିଛ? ଯାହା ହେଉ! ଯେନ ତେନ ପ୍ରକାରେ ଜେଲ୍ ସମୟଟା କଟିଗଲା ଓ ୧୯୦୬ ର ଶେଷରେ ସେ ବାହାରକୁ ଆସିଲେ ।

ସୁଫୀଙ୍କର ହାଇଦରାବାଦ ନିଜାମଙ୍କ ସହ ଘନିଷ୍ଠ ସମ୍ପର୍କ ଥିଲା । ଜେଲ୍‌ରୁ ଛାଡ଼ ପାଇବା ପରେ ସେ ସେଠାକୁ ଗଲେ । ତାଙ୍କ ପାଇଁ ସୁନ୍ଦର ଘରଟିଏ ନିଜାମ ତିଆରି କରେଇଲେ । ଘର ତିଆରି ହୋଇ ସାରିବା ପରେ ନିଜାମ ତାଙ୍କୁ କହିଲେ — "ଆପଣଙ୍କ ପାଇଁ ଘର ତିଆରି ହୋଇ ସାରିଛି ।" ଉତ୍ତରରେ ସେ ନିଜାମଙ୍କୁ କହିଲେ — "ମୁଁ ବି ତିଆର ହୋଇ ସାରିଛି ।" ଲୁଗା ପଟା ନେଇ ସେ ପଞ୍ଜାବକୁ ଚାଲି ଗଲେ । ସେଠାକୁ ଯାଇ ସେ "ହିନ୍ଦୁସ୍ଥାନ" ଖବରକାଗଜରେ କାମ କରିବାରେ ଲାଗିଲେ । ଶୁଣାଯାଏ ଯେ ସେଠାରେ ତାଙ୍କରି ଚତୁରତା, ବାକ୍‌ପଟୁତା ଓ ବୁଦ୍ଧିମତାକୁ ଦେଖି ସରକାରଙ୍କ ତରଫରୁ ମାସିକ ୧୦୦୦ ଟଙ୍କା ଦେବା ପାଇଁ ଏକ ପ୍ରସ୍ତାବ ଗୁପ୍ତଚର ବିଭାଗ ଦ୍ୱାରା ଦିଆ ଯାଇଥିଲା । କିନ୍ତୁ ତା ଅପେକ୍ଷା ସେ ଜେଲ୍ ଓ ଦାରିଦ୍ର୍ୟତାକୁ ହିଁ ଅଧିକ ଶ୍ରେୟ ମଣିଥିଲେ । ପରେ "ହିନ୍ଦୁସ୍ଥାନ" ର ସମ୍ପାଦକଙ୍କ ସହ ମଧ୍ୟ ପଡ଼ିଲାନି । ତେଣୁ ସେହି କାର୍ଯ୍ୟରୁ ମଧ୍ୟ ଇସ୍ତଫା ଦେଲେ।

ସେହି ସମୟ ବେଳକୁ ସରଦାର ଅଜୀତ ସିଂ ଭାରତ ମାତା ସୋସାଇଟି ସ୍ଥାପନା କରି ସାରି ନ୍ୟୁ କଲୋନୀ ବିଲ୍ ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ କରି ଦେଇଥିଲେ । ତାଙ୍କ ସହ ସୁଫୀଙ୍କର ମେଳ ଖାଇଲା । ଅନ୍ୟ ପକ୍ଷରେ ସେ ମଧ୍ୟ ସୁଫୀଙ୍କ ଆଡ଼କୁ ଆକର୍ଷିତ ହେଲେ ।

୧୯୦୬ ମସିହାରେ ପଞ୍ଜାବରେ ପୁଣି ଧରପକଡ଼ ଆରମ୍ଭ ହେବା ଯୋଗୁଁ ସରଦାର ଅଜୀତ ସିଂହଙ୍କ ଭାଇ ସରଦାର କିଶନ ସିଂ ଓ ଭାରତ ମାତା ସୋସାଇଟିର ସମ୍ପାଦକ ମେହତା ଆନନ୍ଦ କିଶୋରଙ୍କ ସହ ସେ ନେପାଳ ଚାଲି ଗଲେ । ସେଠି ନେପାଳ ରାଜ୍ୟର ଗଭର୍ଣ୍ଣର ଶ୍ରୀ ଜଙ୍ଗବହାଦୁରଙ୍କ ସହ ତାଙ୍କର ପରିଚୟ ହୋଇଗଲା। ସେ ୟାଙ୍କ ସହ ଭଲ ବ୍ୟବହାର କଲେ । ପରେ ସୁଫୀଙ୍କୁ ଆଶ୍ରୟ ଦେଇଥିବା କାରଣରୁ ଶ୍ରୀ ଜଙ୍ଗବହାଦୁରଙ୍କୁ ପଦଚ୍ୟୁତ କରା ଯାଇଥିଲା । ତାଙ୍କର ସମ୍ପତ୍ତି ଜପ୍ତ କରା ଯାଇଥିଲା । ଯାହା ହେଉ ସୁଫୀ ଜୀ ସେଠି ଧରା ପଡ଼ିଗଲେ ଓ ତାଙ୍କୁ ଲାହୋର ଅଣାଗଲା । ଲାଲା ପିଣ୍ଡିଦାସଙ୍କ କାଗଜ "ଇଣ୍ଡିଆ"ରେ ପ୍ରକାଶିତ ତାଙ୍କର ଲେଖାଗୁଡ଼ିକୁ ଆଧାର କରି ତାଙ୍କରି ବିରୁଦ୍ଧରେ ମାମଲା ଚାଲିଲା, କିନ୍ତୁ ନିର୍ଦୋଷ ପ୍ରମାଣିତ ହେବାରୁ ପରେ ତାଙ୍କୁ ଛାଡ଼ି ଦିଆଗଲା ।

ତା ପରେ ସରଦାର ଅଜୀତ ସିଂ ମଧ୍ୟ ଛାଡ଼ ପାଇ ଆସିଲେ । ଏବଂ ୧୯୦୯ ରେ ଭାରତ ମାତା ବୁକ୍ ସୋସାଇଟିର ସ୍ଥାପନା କରାଗଲା । ଏହାର ଅଧିକାଂଶ କାର୍ଯ୍ୟ ସୁଫୀ ଜୀ ନିଜେ ହିଁ କରୁଥିଲେ । ସେ "ବାଗୀ ମସୀହ" ବା "ବିଦ୍ରୋହୀ ମସୀହ" ନାମକ ଏକ ପୁସ୍ତକ ପ୍ରକାଶିତ କରେଇଲେ, ଯାହାକୁ ପରେ ଯପ୍ତ କରା ଯାଇଥିଲା।

ଏହି ବର୍ଷରେ ହିଁ ଲୋକମାନ୍ୟ ତିଳକଙ୍କ ବିରୁଦ୍ଧରେ ମାମଲା ଚାଲିଲା ଓ ତାଙ୍କୁ ବି ୬ ବର୍ଷର କାରାଦଣ୍ଡ ମିଳିଲା । ଏହି ପରିସ୍ଥିତିରେ ଦେଶଭକ୍ତ-ମଣ୍ଡଳର ସମସ୍ତ ସଦସ୍ୟ ସାଧୁ ବେଶରେ ପର୍ବତମାଳା ଆଡ଼କୁ ଯାତ୍ରା କରିବା ପାଇଁ ବାହାରି ପଡ଼ିଲେ। ପର୍ବତ ଚଢ଼ି ଯାଉଥିଲେ । ଭକ୍ତଟିଏ ମଧ୍ୟ ସାଥିରେ ଆସିଥିଲା । ସାଧୁମାନେ ବସିବା ପରେ ସେହି ଭକ୍ତଟି ସୁଫୀ ଜୀଙ୍କ ଚରଣ ତଳେ ମଥା ନୁଆଇଁ ନମସ୍କାର କଲା । ବଡ଼ ଜେଣ୍ଟଲ୍‌ମ୍ୟାନ୍ ଥିଲା। ବଢ଼ିଆ ସୁଟ୍ ବୁଟ୍ ପିନ୍ଧି ଥିଲା । ସୁଫୀ ଜୀଙ୍କ ଚରଣ ତଳେ ମଥା ଥାପି ପଚାରିଲା — ବାବା ଜୀ ଆପଣ କେଉଁଠି ରହୁଥିଲେ?

ସୁଫୀ ଜୀ କଠୋର ସ୍ୱରରେ ଉତ୍ତର ଦେଲେ — ରହୁଥିଲି ତୋ ମୁଣ୍ଡରେ!

ସାଧୁ ଜୀ ଆପଣ କାହିଁକି ରାଗି ଗଲେ?

ଆରେ ବୋକା! ତୁ ମୋତେ କାହିଁକି ନମସ୍କାର କଲୁ, ଆହୁରି ତ ଅନେକ ସାଧୁ ଥିଲେ, ତାଙ୍କୁ କାହିଁକି ପ୍ରଣାମ କଲୁନି?

ମୁଁ ଆପଣଙ୍କୁ ସାଧୁ ବୋଲି ଭାବିଥିଲି ।

ହଉ ହେଲା ଯାଆ, ଖାଇବା ପିଇବା ପାଇଁ କିଛି ନେଇଆ ।

କିଛି ସମୟ ପରେ ସେ ବଢ଼ିଆ ବଢ଼ିଆ ଜିନିଷ ନେଇ ଆସିଲା । ଖାଇ-ପି ସାରି ସୁଫୀ ଜୀ ତାଙ୍କୁ ପୁଣି ଡାକି କହିଲେ — ଆବେ ଏ, ତୁ ଆମ ପିଛା ଛାଡ଼ିବୁ ନା ନାହିଁ?

ସତରେ ମୁଁ ଆପଣଙ୍କୁ କଅଣ କିଛି କହୁଛି?

ଚାଲାକୀ ଛାଡ୍ । ଆସିଛି ଜାସୁସୀ କରିବାକୁ! ଯା, ତୋ ବାପାକୁ କହିବୁ — ସୁଫୀ ପାହାଡ଼କୁ ବିଦ୍ରୋହ କରିବାକୁ ଯାଉଛନ୍ତି ।

ସେ ପାଦ ତଳେ ପଡ଼ିଗଲା — ହଜୁର, ପେଟ ପାଇଁ ସବୁ କିଛି କରିବାକୁ ପଡୁଛି ।

ସେ ୧୯୦୯ ରେ "ପେଶବା" ଖବରକାଗଜ ବାହାର କଲେ । ସେତେବେଳେ ବଙ୍ଗଳାରେ ବୈପ୍ଲବିକ ଆନ୍ଦୋଳନ ପ୍ରବଳ ରୂପ ଧରିଥାଏ । ସରକାରଙ୍କର ଚିନ୍ତା ଥିଲା କାଳେ ଏହା ବ୍ୟାପୀ ପଞ୍ଜାବକୁ ଜାଳି ଦେବ । ଏଣୁ ଦମନ-ଚକ୍ର ଆରମ୍ଭ ହେଲା । ସେତେବେଳେ ସୁଫୀ ଜୀ, ସରଦାର ଅଜୀତ ସିଂ ଓ ଜିଆ ଉଲ୍ ହକ୍ ଇରାନ ଚାଲି ଗଲେ । ସେଠାରେ ପହଞ୍ଚିବା ପରେ ଜିଆ ଉଲ୍ ହକ୍‌ଙ୍କର ସଂକଳ୍ପ ବଦଳିଗଲା । ସେ ଭାବିଲେ, ଏମାନଙ୍କୁ ଯଦି ଧରେଇ ଦିଏ ତେବେ ଇନାମ ତ ମିଳିବ, ପୁଣି ଦଣ୍ଡ ମଧ୍ୟ ଭୋଗ କରିବାକୁ ପଡ଼ିବନି । କିନ୍ତୁ ସୁଫୀ ଜୀ ବୁଝି ଗଲେ। ତେଣୁ ସେ ତାଙ୍କୁ ହିଁ ଆଗରେ ପଠାଇଲେ । ଫଳସ୍ୱରୂପ ସେ ନିଜେ ହିଁ ଧରା ପଡ଼ିଗଲେ ଓ ଏ ଦୁହେଁ ରକ୍ଷା ପାଇଗଲେ ।

ଇରାନରେ ସେ କେମିତି ରହିଲେ, କଅଣ ହେଲା, ଏହି କଥା ତ କୌଣସି ସୁଯୋଗରେ ଲୋକଲୋଚନକୁ ଆସିବ, ତଥାପି ଯାହା ଶୁଣା ଯାଉଛି ସେହି କଥାକୁ ଏଠି ଉଲ୍ଲେଖ କରା ଯାଉଛି । ଇରାନରେ ଇଂରେଜମାନେ ତାଙ୍କର ବହୁତ ସନ୍ଧାନ କଲେ, ଏଣୁ ତାଙ୍କୁ ବହୁତ କଷ୍ଟ ସହିବାକୁ ପଡ଼ିଥିଲା । କୁହା ଯାଉଛି ଯେ ଗୋଟିଏ ସ୍ଥାନରେ ତାଙ୍କୁ ଘେରଉ କରି ଦିଆଗଲା । ସେଠାରୁ ଖସି ପଳେଇବା ଅସମ୍ଭବ ଜଣା ଯାଉଥିଲା । ସେଠି ବ୍ୟବସାୟୀମାନଙ୍କର ଏକ କାଫ୍‌ଲା (ଦଳ) ରହିଥିଲା । ଓଟଗୁଡ଼ିକ

ଉପରେ ବହୁତ ସିନ୍ଦୁକ ଲଦା ହୋଇଥିଲା । ଆଗ ସିନ୍ଦୁକଗୁଡ଼ିକରେ ବସ୍ତ୍ର ଆଦି ଭରି ହୋଇଥିଲା । ଗୋଟିଏ ଓଟର ଦୁଇଟି ସିନ୍ଦୁକରେ ସୁଫୀ ଜୀ ତଥା ଅଜୀତ ସିଂଙ୍କୁ ବନ୍ଦ କରି ଦିଆଗଲା ଓ ସେଠାରୁ ଉଦ୍ଧାର କରି ବାହାରକୁ ଅଣାଗଲା ।

ପରେ ପୁଣି କୌଣସି ଏକ ଧନୀ ଲୋକ ଘରେ ରହିଥିଲେ । ଜଣା ପଡ଼ିଗଲା ଓ ପୁଣି ଘେରଉରେ ପଡ଼ିଲେ। ସେହି ସମୟରେ ଏଇ ଦୁହିଁଙ୍କୁ ବୁର୍‌କା ପିନ୍ଧାଇ ଜନାନାମହଲରେ ବସେଇ ଦିଆଗଲା । ସମସ୍ତଙ୍କର ତଲାସି ନିଆଗଲା ଓ ଶେଷରେ ସ୍ତ୍ରୀ ଲୋକମାନଙ୍କର ମଧ୍ୟ ତଲାସି ନେବା ଆରମ୍ଭ ହେଇଗଲା । ଜଣେ ଦୁଇଜଣଙ୍କର ବୁର୍‌କା ମଧ୍ୟ ଉଠାଗଲା, ମୁସଲମାନ ଲୋକମାନେ ଲଢ଼ି-ମରିବା ପାଇଁ ପ୍ରସ୍ତୁତ ହୋଇଗଲେ ଓ ଆଉ କୌଣସି ସ୍ତ୍ରୀ ଲୋକର ବୁର୍‌କା ଉଠେଇବା ପାଇଁ ଦିଆ ଗଲାନି। ଏହି ଭାବେ ସେ ଦୁହେଁ ଏଠାରୁ ମଧ୍ୟ ବର୍ତ୍ତି ଗଲେ ।

ପରେ ସେ ସେଠାରୁ "ଆବେହୟାତ" ନାମକ ପତ୍ରିକା ବାହାର କଲେ ଓ ରାଷ୍ଟ୍ରୀୟ ଆନ୍ଦୋଳନରେ ଭାଗ ନେବାରେ ଲାଗିଲେ । ସରଦାର ସାହେବ ତୁର୍କୀ ଚାଲିଯିବା ପରେ ସେଠିକାର ସମସ୍ତ କାର୍ଯ୍ୟର ଭାର ତାଙ୍କରି କାନ୍ଧ ଉପରେ ରହିଲା ଓ ସେଠାରେ ହିଁ ସେ ସୁଫୀ ନାମରେ ପ୍ରସିଦ୍ଧ ହେଲେ । ୧୯୧୫ ରେ ଯେଉଁ ସମୟରେ ଇରାନରେ ଇଂରେଜମାନେ ସେମାନଙ୍କର ପ୍ରଭୂତ୍ୱକୁ ସମ୍ପୂର୍ଣ୍ଣ ରୂପେ ଜମେଇବା ପାଇଁ ଚାହୁଁଥିଲେ, କିଛିଟା ବିଶୃଙ୍ଖଳା, ଅରାଜକତା ଦେଖା ଦେଇଥିଲା । ସିରାଜ ସହରକୁ ଘେରଉ କରି ଦିଆଗଲା । ସେହି ସମୟରେ ସୁଫୀ ଜୀ ବାଁ ହାତରେ ରିଭଲ୍‌ଭର୍ ଚଳେଇ ତାହାର ସାମନା କରିଥିଲେ, କିନ୍ତୁ ଶେଷରେ ସେ ଇଂରେଜମାନଙ୍କ ହାତରେ ପଡ଼ିଗଲେ । ତାଙ୍କର କୋର୍ଟ ମାର୍ଶାଲ୍ ହେଲା । ଫଇସଲା ହେଲା ଯେ କାଲି ଗୁଳି ମାରି ଉଡ଼େଇ ଦିଆଯିବ । ସୁଫି କୋଠରୀରେ ବନ୍ଦ ଥିଲେ ।

ସକାଳେ ଦେଖିଲା ବେଳକୁ ସେ ସମାଧି ଅବସ୍ଥାରେ ଥିଲେ । ତାଙ୍କର ପ୍ରାଣ ପକ୍ଷୀଟି ଉଡ଼ି ସାରିଥିଲା । ତାଙ୍କର ଶବଯାତ୍ରାରେ ଅସଂଖ୍ୟ ଇରାନୀ ଯାଇଥିଲେ ଓ ସେମାନେ ଦୀର୍ଘ କାଳ ପାଇଁ ଶୋକ ପାଳନ କରିଥିଲେ । କେତେ ଦିନ ପର୍ଯ୍ୟନ୍ତ ସହର ସାରା ଉଦାସୀନତା ଛାଇ ହୋଇ ରହିଥିଲା । ସୁଫୀ ଜୀଙ୍କର କବର ତିଆରି ହେଲା । ଆଜି ଯାଏଁ ତାଙ୍କର କବର ଠାରେ ପ୍ରତି ବର୍ଷ ଉତ୍ସବ ପାଳିତ ହୋଇଆସୁଛି । ଲୋକମାନେ ତାଙ୍କରି ନାମ ଶୁଣିବା ମାତ୍ରେ ଶ୍ରଦ୍ଧାରେ ନତ ମସ୍ତକ ହୁଅନ୍ତି । ପାଦରେ ମଧ୍ୟ ଲେଖନୀ ଧରି ଭଲ ଭାବେ ଲେଖି ପାରୁଥିଲେ । ଦିନେ ଜଣେ ମହାଶୟ କହୁଥିଲେ ଯେ ମୋତେ ସେ ପାଦରେ ହିଁ ଲେଖି ଏକ ଔଷଧପତ୍ର ଦେଇଥିଲେ।

ବନ୍ଧୁମାନେ ଆଉ ଏକ କାହାଣୀ ଶୁଣେଇ ଥିଲେ । କେତେ ଦୂର ସତ ଜଣା ନାହିଁ । କିନ୍ତୁ ସତ ହୋଇଥିବା ସମ୍ଭାବନାଟା ଖୁବ୍ ବେଶି । ସେମାନେ କହୁଥିଲେ, ଯେତେବେଳେ ଭୋପାଳ ବା ଅନ୍ୟ କୌଣସି ଏକ ରାଜ୍ୟରେ ରେସିଡେଣ୍ଟ୍ କିଛି ଗଡ଼୍‌ବଡ଼୍ କରୁଥିଲେ ଓ ତାକୁ ଗିଳିବା ଚିନ୍ତାରେ ଥିଲେ, ସେତେବେଳେ ସେଠିକାର ଭିତିରି ପେଞ୍ଚ ପ୍ରକାଶ କରିବା ଉଦ୍ଦେଶ୍ୟରେ ଅମୃତ ବଜାର ପତ୍ରିକା ତରଫରୁ ସୁଫୀ ଜୀଙ୍କୁ ସେଠାକୁ ପଠା ଯାଇଥିଲା । ଏହା ୧୮୯୦ ଆଖପାଖର କଥା ।

ପାଗଳ ଭଳିଆ ମଣିଷଟିଏ ରେସିଡେଣ୍ଟଙ୍କ ସେବକମାନଙ୍କ ନିକଟରେ ପହଞ୍ଚିଲା ନୌକରିର ସନ୍ଧାନରେ । ଶେଷରେ କେବଳ ଖାଇବା ମୁଠିକର ବଦଳରେ ତାକୁ କାମରେ ରଖି ନିଆଗଲା । ସେ ପାଗଳ ବାସନ କୁସନ ମାଜିବା ବେଳେ ମାଟି ଲଟପଟ ହେଇ ଯାଉଥିଲା । ମୁହଁ ସାରା ମାଟି ବୋଳି ପକଉଥିଲା । ସୌଦା କିଣିବାରେ କିନ୍ତୁ ବଡ଼ ଚତୁର ଥିଲା, ତେଣୁ ଜିନିଷପତ୍ର କିଣିବା ପାଇଁ ତାକୁ ହିଁ ପଠା ଯାଉଥିଲା ।

ତେଣେ ଅମୃତ ବଜାର ପତ୍ରିକାରେ ରେସିଡେଣ୍ଟ୍‌ଙ୍କ ବିରୁଦ୍ଧରେ ଧଡ଼ାଧଡ଼୍ ଲେଖା ବାହାରିବାରେ ଲଗିଲା । ଶେଷରେ ଏତେ ବଦ୍‌ନାମ ହେଲା ଯେ ପଦଚ୍ୟୁତ କରି ଦିଆଗଲା । ଯେତେବେଳେ ସେ ରାଜ୍ୟର ବାହାରେ ପହଞ୍ଚିଗଲେ, ସେତେବେଳେ ଗୋଟିଏ ଜଙ୍କସନ୍‌ରେ ଟୋପି ଲଗେଇ, ପେଣ୍ଟ୍ ବୁଟ୍ ପିନ୍ଧି ଗୋଟିଏ କାଳିଆ ଲୋକ ତାଙ୍କରି ଆଡ଼କୁ ଆସିଲା । ତାକୁ ଦେଖି ରେସିଡେଣ୍ଟ୍ ଚକିତ ହୋଇ ରହିଗଲେ । ଆରେ, ଇଏତ ସେହି ଲୋକ ଯିଏ ମୋର ବାସନକୁସନ ଧୋଉଥିଲା । ଆଜି ତ ପାଗଳ ନୁହେଁ । ସିଏ ଆସୁ ଆସୁ ଇଂରାଜିରେ କଥାବାର୍ତ୍ତା ଆରମ୍ଭ କରିଦେଲା। ତାକୁ ଦେଖି ରେସିଡେଣ୍ଟ୍ ଥରହର ହେଲେ । ଶେଷରେ ସେ କହିଲେ — ତୁମକୁ ତ ଇନାମ୍ ଦିଆ ସରିଛି, ଏବେ ମୋ ପାଖକୁ କାହିଁକି ଆସିଛ?

ଆପଣ କହିଥିଲେ — ଯେଉଁ ଗୁପ୍ତଚର ଆପଣଙ୍କ ଭିତିରି ପେଞ୍ଚକୁ ପଦାରେ ପକେଇଛି ତାକୁ କେହି ଧରେଇ ଦେଲେ ଧରେଇ ଦେବା ଲୋକକୁ କିଛି ଇନାମ୍ ଦେବେ ।

ହଁ, କହିଥିଲି ତ । କଅଣ ତୁମେ ତାକୁ ଧରିଛ?

ହଁ, ହଁ, ଇନାମ୍ ଦିଅନ୍ତୁ । ସିଏ ମୁଁ ନିଜେ ।

ସେ ଥର ଥର କମ୍ପିବାରେ ଲାଗିଲେ । କହିଲେ — ରାଜ୍ୟ ଭିତରେ ଯଦି ତୁମର ସୁରାକ୍ ମିଳିଥାନ୍ତା ତେବେ ଟିକିଟିକି କରି ଉଡ଼େଇ ଦିଅନ୍ତି । ହେଲେ, ତାକୁ ଗୋଟିଏ ସୁନାର ଘଡ଼ି ଦେଇ କହିଲେ — ଯଦି ତୁମେ ରାଜି ହେବ ତେବେ ଗୁପ୍ତଚର ବିଭାଗରୁ ତୁମକୁ ମାସିକ ୧୦୦୦ ଟଙ୍କା ଦେବାର ବ୍ୟବସ୍ଥା କରି ଦେଇ ପାରିବି ।

କିନ୍ତୁ ସୁଫୀ ଜୀ କହିଲେ — କେବଳ ବେତନ ନେବାର କଥା ହୋଇଥିଲେ ଆପଣଙ୍କର ବାସନ କାହିଁକି ଧୁଅନ୍ତି?

ଆଜି ସୁଫୀ ଜୀ ଏହି ଦେଶରେ ନାହାଁନ୍ତି । ତେବେ ବି ଏଭଳି ଦେଶଭକ୍ତଙ୍କ ସ୍ମରଣ ସ୍ଫୂର୍ତ୍ତିଦାୟକ ହୋଇଥାଏ। ଈଶ୍ୱର ତାଙ୍କରି ଆତ୍ମାକୁ ଚୀର ଶାନ୍ତି ଦିଅନ୍ତୁ ।

e-mail: neelamanisahu@rediffmail.com

୯୪୩୭୫୧୫୭୮୨